ISSN: 2456-9194, Vol. I, Issue. IV, March 2018


ପ୍ରତ୍ୟୟ

(Journal of Odia Language, Culture and Science)

JournalHomepage:http://cphfs.in/research.php




# ବଳରାମ ଦାସ : କବି ବ୍ୟକ୍ତିତ୍ୱ


**ନୀଳାଦ୍ରି ଭୂଷଣ ହରିଚନ୍ଦନ**

ଅବସରପ୍ରାପ୍ତ ପ୍ରଫେସର, ଓଡ଼ିଆ ବିଭାଗ,

ବିଶ୍ୱଭାରତୀ, ଶାନ୍ତିନିକେତନ,

କେ-୩, କଳିଙ୍ଗ ବିହାର, ଭୁବନେଶ୍ୱର – ୨୯

e-mail: nbharichandan@gmail.com

ମୋବାଇଲ : ୭୩୭୭୩୩୯୯୩୭


ପଞ୍ଚସଖା ଯୁଗର ବୟୋଜ୍ୟେଷ୍ଠ କବି ବଳରାମ ଦାସ ଓଡ଼ିଆ ଭାଷାର ରାମାୟଣ ରଚନା ଦ୍ୱାରା ସମଗ୍ର ଓଡ଼ିଆ ଜାତିକୁ ଧର୍ମୀୟ ତଥା କାବ୍ୟିକ ରସ-ଆସ୍ୱାଦନ କରାଇ ବିପୁଳ ଜନପ୍ରିୟତା ଲାଭ କରିଛନ୍ତି । ତାଙ୍କର ଶ୍ରେଷ୍ଠକୃତି ‘ଦାଣ୍ଡୀ ରାମାୟଣ’ ତୁଳସୀ ଦାସଙ୍କ ରାମାୟଣ ସହ କାବ୍ୟ ବିଭବରେ ତୁଳନୀୟ ନ ହେଲେ ମଧ୍ୟ ଭାରତୀୟ ଭାଷାର ଏକ ମୌଳିକ ରାମାୟଣ ରୂପେ ସ୍ୱୀକୃତ । ପୁରାଣ ଶୈଳୀରେ ଲିଖିତ ଏହି ରାମାୟଣ ବାଲ୍ମୀକିଙ୍କ ସଂସ୍କୃତ ରାମାୟଣର ଅନୁକୃତି ନୁହେଁ, ଉତ୍କଳୀୟ ପରିବେଶରେ ଲିଖିତ ଏକ ଜୀବନଧର୍ମୀ ମହାକାବ୍ୟ । ବଳରାମ ବହୁ ସୃଷ୍ଟିର ସ୍ରଷ୍ଟା ହେଲେ ମଧ୍ୟ ରାମାୟଣ ହିଁ ତାଙ୍କୁ ଦେଇଛି ପରମ୍ପରା ସମୃଦ୍ଧ ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ଅମଳିନ ପ୍ରତିଷ୍ଠା ।

ପଞ୍ଚଦଶ ଶତାବ୍ଦୀର ଏକ ଘଡ଼ିସନ୍ଧି ସମୟରେ ଏହି ମହାନ୍ ସ୍ରଷ୍ଟାଙ୍କର ଉଦ୍ଭବ ଓ ବିକାଶ । ଏହି ସମୟଟି ଥିଲା ସଂସ୍କୃତ ପ୍ରାଧାନ୍ୟର କାଳ । ରାଜା, ସାମନ୍ତ ଓ ସମ୍ଭ୍ରାନ୍ତ ବ୍ୟକ୍ତିମାନଙ୍କର କାବ୍ୟ ବିଳାସ ଥିଲା ସଂସ୍କୃତ ସାହିତ୍ୟ ମଧ୍ୟରେ ସୀମାବଦ୍ଧ । ସଂସ୍କୃତ ଭାଷାର ବିଦ୍ୱାନ, ପଣ୍ଡିତ, କବି, ସାହିତ୍ୟିକମାନେ ରାଜଦରବାରରେ ସାହିତ୍ୟ ଚର୍ଚ୍ଚାକୁ ସମ୍ପୂର୍ଣ୍ଣ କରାୟତ୍ତ କରି ରଖିଥିଲେ । ସେଠାରେ ଏଇ ମାଟି ଓ ମଣିଷର ଭାଷା ଓଡ଼ିଆ ଭାଷାର ଆଦୌ ସ୍ଥାନ ନ ଥିଲା । ତେଣୁ ସାଧାରଣ ଜନତା ଲାଗି ମାତୃଭାଷାରେ ଲିଖିତ ସାହିତ୍ୟର ପ୍ରସାର ଓ ପ୍ରଚାର ଥିଲା ଅତ୍ୟନ୍ତ କ୍ଷୀଣ । ଅଥଚ ଜନସାଧାରଣଙ୍କ ସାହିତ୍ୟିକ ରସତୃଷ୍ଣା ପରିତୃପ୍ତ କରିବା ଲାଗି କୌଣସି ମାଧ୍ୟମ ନ ଥିଲା । ସଂସ୍କୃତରେ ଲିଖିତ ରାମାୟଣ, ମହାଭାରତ ଓ ଭାଗବତ ସାଧାରଣ ମଣିଷ ଧର୍ମୀୟ ମାନସ-ବିଳାସର ସାମଗ୍ରୀ ହୋଇପାରୁନଥିଲା । ସେମାନଙ୍କର ଏହି ଅପରିପୂର୍ଣ୍ଣ ମହତ୍ ଆକାଂକ୍ଷାକୁ ପୂର୍ଣ୍ଣ କରିବା ଲାଗି ଆଗେଇ ଆସିଥିଲେ ତିନିଜଣ ସନ୍ଥକବି । ସେମାନେ ହେଲେ ମହାଭାରତକାର ଶୁଦ୍ରମୁନି ସାରଳା ଦାସ, ରାମାୟଣକାର ବଳରାମ ଦାସ ଓ ଭାଗବତକାର ଜଗନ୍ନାଥ ଦାସ । ଏହି ବୈପ୍ଳବିକ ପଦକ୍ଷେପ ପାଇଁ ବହୁ ଦୁର୍ଭୋଗର ସମ୍ମୁଖୀନ ହେବାକୁ ପଡ଼ିଛି ଏହି ତିନିଜଣଙ୍କୁ । ବଳରାମ ଦାସ ଥିଲେ ସାରଳାଦାସଙ୍କ ପରି ନିଜସ୍ୱ ମାଟିର ବିଶ୍ୱସ୍ତ ରୂପକାର । ସେ ଜନ୍ମଗ୍ରହଣ କରିଥିଲେ ଓଡ଼ିଶାର ତତ୍କାଳୀନ ପୁରୀ ନିକଟସ୍ଥ ଏକ ଗ୍ରାମରେ ୧୪୮୪ ମସିହାରେ । ତାଙ୍କର ପିତା ଥିଲେ ଗଜପତି ପ୍ରତାପରୁଦ୍ର ଦେବଙ୍କର ଜନୈକ ମନ୍ତ୍ରୀ ସୋମନାଥ ମହାପାତ୍ର ଏବଂ ମାତା ଥିଲେ ଜମ୍ବୁଦେବୀ । ବଳରାମ ଦାସ ନିଜର ପରିଚୟ ଦେବାକୁ ଯାଇ ସ୍ୱକୀୟ ଅନୁବାଦ ଭଗବତ୍ ଗୀତାରେ ଲେଖିଛନ୍ତି – “ମହାପାତ୍ର ସୋମନାଥ ତନୟେ । ବଳରାମ ଦାସ ଗୀତରେ କହେ ।” ଅନ୍ୟତ୍ର ରାମାୟଣର ଲଙ୍କାକାଣ୍ଡରେ ମଧ୍ୟ ଲେଖିଛନ୍ତି – “ମହାମନ୍ତ୍ରୀବର ସୋମନାଥ ମହାପାତ୍ର । ବଳରାମ ଦାସ ମୁଁ ଯେ ତାହାଙ୍କର ପୁତ୍ର ।”

ଏକ ସମୟରେ ଦୁଇଜଣ ବଳରାମ ଦାସଙ୍କର ଆବିର୍ଭାବ ବହୁ ସମୟରେ ବିଦ୍ୱାନମାନଙ୍କର ସଂଶୟଯୁକ୍ତ କରିଛି । କିନ୍ତୁ ଉଭୟଙ୍କର ଧର୍ମମତ ଓ ରଚନାଶୈଳୀ ସମ୍ପୂର୍ଣ୍ଣ ଭିନ୍ନ । ଦାଣ୍ଡି ରାମାୟଣକାର ବଳରାମ ଦାସ ପଞ୍ଚସଖା ଗୋଷ୍ଠୀର ମୂର୍ଦ୍ଧନ୍ୟ ସ୍ଥାନୀୟ କବି । ସେ ଥିଲେ ପିଣ୍ଡ ବ୍ରାହ୍ମଣ ତତ୍ତ୍ୱ ସାଧକ, ହଠଯୋଗୀ । ଯୋଗ, ତନ୍ତ୍ର ନିର୍ଜିତ କଠୋର ସାଧନା ଭିତରେ ସେ ଜୀବନ ବିତାଇଥିଲେ । ସେ ମୂଳତଃ ଜଗନ୍ନାଥ ଭକ୍ତ, ଜ୍ଞାନମିଶ୍ରା ଭକ୍ତି ପନ୍ଥୀ ଉତ୍କଳୀୟ ବୈଷ୍ଣବ । ସେଥିପାଇଁ ଗୌଡ଼ୀୟ ବୈଷ୍ଣବୀୟ ବନ୍ଦନାରେ ବଳରାମଙ୍କୁ ଉଡ଼ିଆ ବଳରାମ ଦାସ ଓ ଜଗନ୍ନାଥ ବଳରାମଙ୍କର ଅଂଶ ବୋଲି ବର୍ଣ୍ଣନା କରିଛନ୍ତି । ‘ଉଡ଼ିଆ’ ଅର୍ଥ ଉତ୍କଳୀୟ ବୈଷ୍ଣବ ଏବଂ ‘ଜଗନ୍ନାଥ ବଳରାମଙ୍କର ଅଂଶ’ ଅର୍ଥ ଜଗନ୍ନାଥଧର୍ମୀ । ଗୀତର ପଦଟି ଏହିପରି –

> “ବନ୍ଦି ଉଡ଼ିଆ ବଳରାମ ଦାସ ମହାଶୟ
> ଜଗନ୍ନାଥ ବଳରାମ ଯାର ଅଂଶ ହୟ ।”

ଅନ୍ୟ ଜଣେ ଶୁଦ୍ଧା ଭକ୍ତି ମାର୍ଗାଶ୍ରୟୀ ବୈଷ୍ଣବ ଭକ୍ତ ମତ୍ତ ବଳରାମ ଦାସ ଥିଲେ ଚୈତନ୍ୟଙ୍କର ଅନୁଗତ ଶିଷ୍ୟ । କିନ୍ତୁ ଚୈତନ୍ୟଙ୍କ ଦ୍ୱାରା ବେଶୀ ସମ୍ମାନିତ ହୋଇଥିଲେ ଆଲୋଚ୍ୟ କବି ବଳରାମ ଦାସ ।

ବଳରାମ ଦାସ ମୂଳତଃ ଥିଲେ ଜଣେ ସଂସ୍କୃତ କବି । ତାଙ୍କର ନୀଳାଦ୍ରି ଶତକମ୍, ଉପାସନା ଶତକମ୍, କୃଷ୍ଣଭକ୍ତି-କଳ୍ପଲତା, ନିତ୍ୟ ଗୁପ୍ତମାଳା, ଶ୍ରୀରାଧା ରସମଞ୍ଜରୀ, ପ୍ରେମ ସୁଧାନିଧି ପ୍ରଭୃତି କେତେକ ସଂସ୍କୃତ କାବ୍ୟକୃତି ଥିବା ସତ୍ତ୍ୱେ ସେ ନିଜର ମାତୃଭାଷାରେ କାବ୍ୟ ରଚନା କରି ଓଡ଼ିଆ ଭାଷା ସାହିତ୍ୟର ସମୃଦ୍ଧି ସାଧନ କରିଯାଇଛନ୍ତି । ତାଙ୍କର ଅଧିକାଂଶ ରଚନା ସମଗ୍ର ଓଡ଼ିଶାରେ ପ୍ରସିଦ୍ଧି ଲାଭ କରିଥିଲେ ମଧ୍ୟ କୌଣସି ଦାଣ୍ଡୀ ରାମାୟଣର ସିଦ୍ଧିକୁ ଅତିକ୍ରମ କରିପାରିନାହିଁ ।

ଦାଣ୍ଡୀ ରାମାୟଣ ବା ଜଗମୋହନ ରାମାୟଣ ଉତ୍ତର-ପୂର୍ବ ଭାରତୀୟ ସାହିତ୍ୟ କ୍ଷେତ୍ରରେ ଏକ ଅସାଧାରଣ କୃତିଭାବେ ସ୍ୱୀକୃତ । ରାମାୟଣ-ମହାଭାରତ ରଚନାର ପରମ୍ପରା ଦକ୍ଷିଣ ଭାରତୀୟ ସାହିତ୍ୟରେ ଅବଶ୍ୟ ପୂର୍ବରୁ ଆରମ୍ଭ ହୋଇଯାଇଚି । ତାମିଲ୍ କବି କମ୍ବନ (୧୦ମ-୧୧ଶ ଶତାବ୍ଦୀ), କନ୍ନଡ଼ କବି ଅଭିନବ ପମ୍ପା (୧୨ଶ ଶତାବ୍ଦୀ) ଓ ତେଲୁଗୁ କବି ଶମ୍ଭୁଦାସ (୧୩ଶ-୧୪ଶ ଶତାବ୍ଦୀ) ଙ୍କର ପରବର୍ତ୍ତୀ ସମୟରେ ୧୬ଶ ଶତାବ୍ଦୀର ପ୍ରଥମାର୍ଦ୍ଧରେ ବଳରାମ ଦାସ ଓଡ଼ିଆରେ ରାମାୟଣ ରଚନା କରିଥିଲେ । କିନ୍ତୁ ଗୌରବର ବିଷୟ ଯେ ମରାଠୀ କବି ଶ୍ରୀଧରଙ୍କ ରାମାୟଣ (୧୭ଶ-୧୮ଶ ଶତାବ୍ଦୀ), ବଙ୍ଗୀୟ କବି କୃତ୍ତିବାସଙ୍କ ରାମାୟଣ (୧୭ଶ ଶତାବ୍ଦୀ) ଏବଂ ଭାରତୀୟ ସାହିତ୍ୟ କ୍ଷେତ୍ରରେ ସର୍ବାଧିକ ଖ୍ୟାତିପ୍ରାପ୍ତ ତୁଳସୀ ଦାସଙ୍କ ରାମାୟଣ 'ରାମଚରିତମାନସ' (୧୬ଶ ଶତାବ୍ଦୀ) ଜଗମୋହନ ରାମାୟଣର ପରବର୍ତ୍ତୀ ରଚନା ।

ସାରଳା ଦାସଙ୍କଠାରୁ ଓଡ଼ିଆ ସାହିତ୍ୟରେ ମହାକାବ୍ୟର ମହାପ୍ରବାହ ସୃଷ୍ଟି ହୋଇଯାଇଥିଲା । ବଳରାମ ଦାସ ଅବଶ୍ୟ ସାରଳା ଦାସଙ୍କ ପରି ପ୍ରଚଣ୍ଡ ପ୍ରତିଭାର ଅଧିକାରୀ ନ ଥିଲେ, କିନ୍ତୁ ରାମାୟଣ ମାଧ୍ୟମରେ ସେ ଓଡ଼ିଆ ଭାଷାକୁ ଯେ ଏକ ସରଳ ସୌକୁମାର୍ଯ୍ୟ ଓ ଗତିଶୀଳତା ଦାନ କରିଛନ୍ତି, ଏକଥା ସ୍ୱୀକାର୍ଯ୍ୟ । ଓଡ଼ିଆ ପାଠକମାନଙ୍କର ସହଜ ଅବବୋଧ ଲାଗି ସାବଲୀଳ ଭାଷାରେ ରାମାୟଣର ସୃଷ୍ଟି ତାଙ୍କର କୃତିତ୍ୱ । ବଳରାମ ଦାସ ବାଲ୍ମୀକି ରାମାୟଣକୁ ଅନୁବାଦ ନ କରି ନିଜସ୍ୱ ରୀତିରେ ମୂଳ କଥାବସ୍ତୁ ଉପସ୍ଥାପନ କରିଛନ୍ତି । ଏହି ଉପସ୍ଥାପନ ମଧ୍ୟରେ ବହୁ ସମୟରେ ଓଡ଼ିଶାର ଗ୍ରାମ୍ୟ-ପ୍ରକୃତି ଓ ଆରଣ୍ୟକ ପ୍ରକୃତି ଅପୂର୍ବ ଶୋଭାଧାରଣ କରି ବିଭିନ୍ନ ହୋଇଉଠିଛି । ଓଡ଼ିଆ ଜାତିର ଆଚାର-ବିଚାର, ଜୀବନ ନିର୍ବାହ ପ୍ରଣାଳୀ, ଲୋକ ପରମ୍ପରା ବହୁ ସ୍ଥଳରେ ପୌରାଣିକ ପରିବେଶ ଓ ପରିସ୍ଥିତିର ବର୍ଣ୍ଣନା ଭିତରେ ସମନ୍ୱିତ ହୋଇଯାଇଚି । 'କପିଳାସ', 'ଯାଜପୁର' ପ୍ରଭୃତି ସ୍ଥାନ ରାମାୟଣର ନାୟକ ନାୟିକାଙ୍କ ପଦ ସଂଚରଣରେ ମହତ୍ତ୍ୱପୂର୍ଣ୍ଣ ହୋଇଉଠିଛି । ଏତଦ୍‌ବ୍ୟତୀତ କୁକ୍କୁଟୀର ବରଲାଭ ପ୍ରସଙ୍ଗ, ଲୀଳାବତୀ ହରଣ ଉପାଖ୍ୟାନ, ଗୁଣ୍ଡୁଚିମୂଷା ଉପାଖ୍ୟାନ, ସଚ୍ଛପଣ୍ଡା ଉପାଖ୍ୟାନ, ମନ୍ଥରାର ପୂର୍ବଜନ୍ମ ପ୍ରସଙ୍ଗର ଉପସ୍ଥାପନାରେ କବିଙ୍କର ଅସାଧାରଣ ବର୍ଣ୍ଣନା ବିଳାସ ଓ ପରିବେଶ ସୃଷ୍ଟି ପରିଲକ୍ଷିତ ହୋଇଥାଏ । କବିଙ୍କର ମୌଳିକତା ଓ କବି-ଦୃଷ୍ଟିର ପରିଚୟ ଲାଗି ରଷ୍ୟଶୃଙ୍ଗ ପ୍ରସଙ୍ଗକୁ ଏଠାରେ ଅବତାରଣା କରାଯାଇଛି ।

ବାଲ୍ମୀକି ରାମାୟଣର ମୂଳ କାହାଣୀ ଅନୁସାରେ ଅଙ୍ଗଦେଶର ରାଜା ଲୋମପାଦ ନିଜ ରାଜ୍ୟରେ ଅନାବୃଷ୍ଟି କଲେ । ଶାସ୍ତ୍ରଜ୍ଞ ବ୍ରାହ୍ମଣମାନଙ୍କ ପରାମର୍ଶ କ୍ରମେ ବିଭାଣ୍ଡକ ରଷିଙ୍କ ପୁତ୍ର ଆଜନ୍ମ ବ୍ରହ୍ମଚାରୀ ବେଦବିତ୍ ରଷ୍ୟଶୃଙ୍ଗଙ୍କୁ ଏହି ଯଜ୍ଞରେ ପୁରୋଧା କରାଯିବା ଲାଗି ସ୍ଥିର କରାଗଲା । କିନ୍ତୁ ସାଂସାରିକ ଜ୍ଞାନାନଭିଜ୍ଞ ରଷ୍ୟଶୃଙ୍ଗଙ୍କୁ ଆଣିବା ଗୋଟାଏ ବିରାଟ ସମସ୍ୟା । ଶେଷରେ ସ୍ଥିର ହେଲା ଯେ ରୂପବତୀ ଗଣିକାମାନଙ୍କୁ ରଷ୍ୟଶୃଙ୍ଗଙ୍କ ତପୋବନକୁ ପ୍ରେରଣ କରିବାକୁ ପଡ଼ିବ । ଗଣିକାମାନେ ସୁସଜ୍ଜିତ ହୋଇ ଅପୂର୍ବ ନୃତ୍ୟ ପ୍ରଦର୍ଶନ କରି ରଷିଙ୍କୁ ମୁଗ୍ଧ କରିବେ । ତାଙ୍କୁ ନାନାଦି ବିଳାସ ସାମଗ୍ରୀ ପ୍ରଦାନ ନେଇ ଆସିବେ । ଏହାହିଁ ଘଟିଛି । ରଷ୍ୟଶୃଙ୍ଗ ଜରକୁଶା ବେଶ୍ୟା ପ୍ରତି ଆକୃଷ୍ଟ ହୋଇ ଏବଂ ଅନନୁଭୂତ ଭୋଗ୍ୟବସ୍ତୁ ସମୂହର ପ୍ରଲୋଭନରେ ଗଣିକାମାନଙ୍କ ସହ ଅଙ୍ଗଦେଶକୁ ଚାଲି ଆସିଛନ୍ତି । ବାଲ୍ମୀକି ରାମାୟଣର ସାଧାରଣ ସ୍ଥୂଳ କାହାଣୀ ବର୍ଣ୍ଣନାଟି ବଳରାମଙ୍କ ଲେଖନୀରେ ଅସାଧାରଣ ରସୈଶ୍ୱର୍ଯ୍ୟ ଲାଭ କରିଛି ।

ଅନିନ୍ଦ୍ୟ ସୁନ୍ଦରୀ ଜରକୁଶା ନଟ୍ଟ ଲୋମପାଦଙ୍କ ଆଦେଶରେ ଏକ ସୁସଜ୍ଜିତ ନୌକାରେ ମଦନିକା ପ୍ରଭୃତି ବାରଜଣ ରୂପବତୀ ଗଣିକାଙ୍କୁ ସଙ୍ଗରେ ଧରି ରଷ୍ୟଶୃଙ୍ଗଙ୍କୁ ଆଣିବାକୁ ଯାଇଛି । ଏଇ ଅବସରରେ ଜରକୁଶା ବା ଜରତା ବେଶ୍ୟାରେ ରୂପବର୍ଣ୍ଣନା ଲାଗି କବି ଯେଉଁ ସୁଯୋଗ ପାଇଛନ୍ତି, ତା'ର ପରିପ୍ରକାଶ ଘଟିଛି ନିମ୍ନୋକ୍ତ ରସୋତ୍ତୀର୍ଣ୍ଣ ପଟ ଯୋଜନାରେ –

> "କର୍ଣ୍ଣରେ ତାଟଙ୍ଗ ଖଞ୍ଜି ବାହେ ବିଦ ବାନ୍ଧି
> ଆୟ ଅଳଙ୍କାରମାନ ଝୀନବସ୍ତ୍ର ପିନ୍ଧି ।
> କଣ୍ଠେଣ ପଦକହାର ମୁକୁତାର ଝରା
> ଯଉବନ ପରେ ଶୋହେ ମୋତି କେରା କେରା ।
> ପାଦରେ ନୂପୁର ଶୋହେ ବାହେ ରତ୍ନବାହୀ
> ଲଲାଟେ କସ୍ତୁରୀ ଚିତା ତାମ୍ବୁଳ ଯେ ଖାଇ ।
> ସ୍ତନ ଜାନୁ ଜଘନ ଲୋଚନ ପୁଷ୍ପରେଖା
> କି ଜାଣି ପଟାନ୍ତର ସେ ସ୍ୱପ୍ନର ନାୟିକା ।
> ତାଳଯନ୍ତ୍ର ମୃଦଙ୍ଗାଦି ବେଣୁ ବଂଶୀ ଘେନି
> ନୃତ୍ୟରଙ୍ଗେ ପଣ୍ଡିତ ସେ ସମସ୍ତ ତରୁଣୀ ।"

ସାଂସାରିକ ବୁଦ୍ଧରହିତ, ବିଷୟବାସନା ବର୍ଜିତ, ନାରୀ ସମ୍ପର୍କହୀନ, ରତିଅନଭିଜ୍ଞ, ବ୍ରହ୍ମଚାରୀ ରଷ୍ୟଶୃଙ୍ଗଙ୍କର ନୃତ୍ୟ ପ୍ରବଣା, ସଂଗୀତ ମୁଖରା, ସୁଦୃଶ୍ୟା, ସବେଶା ଗଣିକାମାନଙ୍କୁ ଦେଖି ଯେଉଁ ଅଦ୍ଭୁତ ପ୍ରତିକ୍ରିୟା ଘଟିଥିଲା, ତା'ର ଏକ ଚମତ୍କାର ବର୍ଣ୍ଣନା ଦାଣ୍ଡୀ ରାମାୟଣରେ ଦେଖିବାକୁ ମିଳେ । ରଷିପୁତ୍ର ସେମାନଙ୍କୁ ଭିନ୍ନ ଦେଶୀ ତପସ୍ୱୀ ଭାବି ପାଦ୍ୟ, ଅର୍ଘ୍ୟ ଓ ନୈବେଦ୍ୟ ଦାନ ପୂର୍ବକ ଆଗ୍ରହରେ ଅତିଥି ସତ୍କାର କରିଛନ୍ତି । ସେମାନେ ମଧ୍ୟ ନାନାବିଧ ମିଷ୍ଟାନ୍ନ ଭୋଜନ କରାଇ ରଷ୍ୟଶୃଙ୍ଗଙ୍କ ରସନେନ୍ଦ୍ରିୟକୁ ପରିତୃପ୍ତ କରିଛନ୍ତି । ସୁମଧୁର ସଙ୍ଗୀତରେ ଶ୍ରବଣେନ୍ଦ୍ରିୟକୁ ଏବଂ ଅପୂର୍ବ ଲାସ୍ୟ ରଚନାରେ ଦର୍ଶନେନ୍ଦ୍ରିୟକୁ ବିମୋହିତ କରିଛନ୍ତି । ନୃତ୍ୟ ଚପଳା ବାରାଙ୍ଗନାମାନେ କୌଶଳ କ୍ରମେ ଭାବବିହ୍ୱଳ ରଷିପୁତ୍ରଙ୍କୁ ନାରୀ ଦେହର ଅନାସ୍ୱାଦିତ ରୋମାଞ୍ଚଭରା ରହସ୍ୟ ସହ ପରିଚିତ କରାଇ ଦେଇଛନ୍ତି । ଫଳରେ ସେମାନଙ୍କ ପ୍ରତି ରଷ୍ୟଶୃଙ୍ଗଙ୍କ ଆକର୍ଷଣ ହୋଇଉଠିଛି ଅଦମ୍ୟ, ଅପ୍ରତିରୋଧ ।

ଅବୋଧ ରଷିପୁତ୍ର ନୃତ୍ୟଗୀତରତା ବେଶ୍ୟାମାନଙ୍କୁ ଅସାଧାରଣ ତପସ୍ୱୀ ଭାବି ଯେପରି ପ୍ରଶ୍ନ କରିଛନ୍ତି, ତାହା ପାଠକ ପକ୍ଷରେ ବଡ଼ ଆମୋଦଦାୟକ ।

> "କେବଣ ତୀର୍ଥରେ ଥିଲ କାହିଁ ତୁମ୍ଭ ଘର
> କେବଣ ହିଁ ବେଦବିଦ୍ୟା ନିତ୍ୟ ଜପକର ।

କେବଣ ବିପିନେ ତୁମ୍ଭେ କୁଟୀ କରିଥିଲ
କେବଣ ଅର୍ଥେ ଯେ ତୁମ୍ଭେ ଏଥକୁ ଅଇଲ ।
କିସ ନାମ ତୁମ୍ଭର କେବଣ କୁଳେ ଜାତ
ଏକ ସଙ୍ଗେ ଥାଅ କି ସକଳ ତପୋବନ୍ତ ।"

ଏହାର ଚାତୁର୍ଯ୍ୟପୂର୍ଣ୍ଣ ଉତ୍ତର ଦିଆଯାଇଚି କାମମୋଦିନୀ ମୁଖରେ –

"ଜାତି ଆମ୍ଭର ଯେ ବେଶ୍ୟା ସୁବେଶରେ ଥାଉ
ନୃତ୍ୟ ଗୀତ ଶୃଙ୍ଗାରରେ ପର ମନ ମୋହୁ ।
ମଦନ ଅନଙ୍ଗ ଜାତ ରତିଶୋଷ୍ତେ ଇଚ୍ଛା
ଅଭିନବ ଜନ ସଙ୍ଗେ କରୁ ବହୁ ବାଞ୍ଛା ।
କାମଶାସ୍ତ୍ର ଅଭ୍ୟାସ ଯେ ତପସ୍ୟା ଆମ୍ଭର
ଚୁମ୍ବନ, ପରିହାସ ଯେ ପୀରତି ଅପାର ।"

ଋଷ୍ୟଶୃଙ୍ଗ ମୁଗ୍ଧ ବିସ୍ମିତ ହୋଇ ଛଦ୍ମ ନୂତନ ଋଷିମାନଙ୍କର ଅପୂର୍ବ ସାଧନା ପ୍ରଣାଳୀ ବିଷୟରେ ଚିନ୍ତା କରୁ କରୁ ରୂପସୀ କାମମୋହିନୀ ଆଗେଇ ଆସିଲା ସେମାନଙ୍କ ତପସ୍ୟାର ଆଚାର ବିଧି ଶିଖାଇ ଦେବାକୁ । ଋଷିକୁମାର କେତେବେଳେ ଏକ ଅନନୁଭୂତ ରୋମାଞ୍ଚରେ ବିଚାର ଶକ୍ତି ହରାଇ ବସିଲେ, ସେ ଜାଣନ୍ତି ନାହିଁ । ଏହିପରି ସମ୍ମୋହିତ ଅବସ୍ଥାରେ ତାଙ୍କୁ ଅଙ୍ଗ ଦେଶକୁ ଅପହରଣ କରିନେବା ସହଜସାଧ୍ୟ ହୋଇଥିଲା । ଏହି ଅଂଶଟି ନାଟକୀୟ ସଂଳାପ ଗୀତିରେ ଉପସ୍ଥାପନ କରିଛନ୍ତି ବଳରାମ ଦାସ ।

"ଦେହରେ ହସ୍ତ ଦେଇଣ ଚଳାଇଲା ନଖ
ପୁଣି ହିଁ ଲେଉଟି ସେ ଚାହିଁଲା ମୁନି ମୁଖ ।
ହିଆକୁ ହିଆ ଲଗାଇ ଉରଜ ଠେସିଲା
ହସ ହସ ହୋଇ ମୁନି ବାକ୍ୟ ପଚାରିଲା ।
ଏମନ୍ତ ଅପୂର୍ବ ଦ୍ରବ୍ୟ ଆମ୍ଭେ ଦେଶେ ନାହିଁ
ଏଡ଼େ ଭଲ ପଦାର୍ଥ ପାଇଲ ତୁମ୍ଭେ କାହିଁ ।"

ଏହି ପ୍ରଶ୍ନଟିର ଉତ୍ତର କାମମୋହିନୀ ଦେଇଛି ଚଟୁଳ ଚାତୁର୍ଯ୍ୟୋକ୍ତି ମାଧ୍ୟମରେ ।

"ଏହୁ ଯେ ଅଟଇ ଆମ୍ଭର ନିଜ ଦେହ
ଗଙ୍ଗାଙ୍କର ପୁଣ୍ୟଫଳେ ଯୁବାଜନ ମୋହ ।
ନୀଳ ମୁଖ ବିଷ୍ଣୁ ଆମ୍ଭ ଦେହେ ବିଜେ କଲା
ଦାନ ବତ୍ସଳ ବାନା ସେ ତେଣୁ ବୋଲାଇଲା ।
ଏମନ୍ତ ଅପୂର୍ବ ଫଳ ଅଛି ମୁନି ଯହିଁ
ଅପୂର୍ବ ଶାଳଗ୍ରାମ ପୂଜିଲେ ପୁଣ୍ୟ ପାଇ ।
କରେ ସମାର୍ଜନା କର ପ୍ରସନ୍ନ ହୁଅନ୍ତୁ
ମନ ଯାହା ନ ଜାଣେ ସେ ଫଳ ତୋତେ ଦ୍ୟନ୍ତୁ ।
ହିଆକୁ ଭିଡ଼ିଣ ସେ ଆଣିଲା କୋଳ କରି
ହସିଣ ଚୁମ୍ବନ ସେ ଦିଅଇ ପ୍ରେମ କରି ।"

ଉପରୋକ୍ତ ବର୍ଣ୍ଣନାରେ କେବଳ ଚିରନ୍ତନ ଯୁଗନଦ୍ଧ ଲୀଳାର ରସୋଚ୍ଛଳ ପ୍ରକାଶ ଘଟିନାହିଁ, ଘଟିଛି ଏକ ଗଭୀର ଅନ୍ତର୍ଦୃଷ୍ଟି ତଥା ସୌନ୍ଦର୍ଯ୍ୟପିପାସୁ ମାନସିକତାର ସୁସ୍ପଷ୍ଟ ଉଚ୍ଚାରଣ । ବିପୁଳ ଜନଗୋଷ୍ଠୀର ଧର୍ମୀୟ ରସତୃଷ୍ଣାକୁ ପରିତୃପ୍ତ କରିବା ପାଇଁ ସରଳ ସାବଲୀଳ ଛନ୍ଦୋବଦ୍ଧ ପଦ୍ୟ ମାଧ୍ୟମରେ କାହାଣୀ ଉପସ୍ଥାପନ କରୁଥିବା ଜଣେ ସ୍ରଷ୍ଟା ଯେ ନିଜର ଅନନ୍ୟ କାବ୍ୟକଳ୍ପନା ଦ୍ୱାରା ରସିକ ଗ୍ରାହକକୁ ମୁଗ୍ଧ କରି ଦେଇପାରେ, ତା'ର ଉଦାହରଣ ଭାବେ ଏଇ ଗୋଟିଏ ମାତ୍ର ପ୍ରସଙ୍ଗର ଅବତାରଣା କରାଗଲା । କିନ୍ତୁ ବହୁ ସ୍ଥାନରେ ସ୍ୱତଃସ୍ଫୂର୍ତ୍ତ ଭାବରେ ଘଟିଛି କବିଙ୍କର ବିମଳ କବିତ୍ୱର ଚଟୁଳ ପରିପ୍ରକାଶ । ପୁଣି ସୁଯୋଗ ପାଇବା ମାତ୍ରେ କବି ଯେତେବେଳେ ଓଡ଼ିଆ ସମାଜ ଜୀବନକୁ ଏକ ବିସ୍ତୃତ ପଟ୍ଟଭୂମିରେ ଉପସ୍ଥାପନ କରିଛନ୍ତି, ସେତେବେଳେ ତାଙ୍କର ସୂକ୍ଷ୍ମ ପର୍ଯ୍ୟବେକ୍ଷଣ ଶକ୍ତିର ସୁସ୍ପଷ୍ଟ ପରିଚୟ ମିଳିଯାଏ । ସ୍ଥଳବିଶେଷରେ ଜନଜୀବନ ସହିତ ଭୌଗୋଳିକ ପରିବେଶର ବର୍ଣ୍ଣନା ଭିତରେ ସ୍ୱତଃ ଚାଲିଆସେ ଓଡ଼ିଶାର ଗ୍ରାମ, ଜନପଦ, ନଦୀ, ହ୍ରଦ, ଅରଣ୍ୟ, ପର୍ବତ । ପରିବେଶ ପରିକଳ୍ପନାରେ ହିଁ କବିଙ୍କର ବିଶେଷତ୍ୱ ପରିଲକ୍ଷିତ ।

ବଳରାମ ଦାସ ରାମାୟଣ ମହାକାବ୍ୟ ବ୍ୟତୀତ ବହୁ କ୍ଷୁଦ୍ର ରଚନାରେ ମଧ୍ୟ ହାତ ଦେଇଥିଲେ । କ୍ଷୁଦ୍ର ରଚନାଗୁଡ଼ିକ ମଧ୍ୟରୁ ବେଦାନ୍ତସାର ଗୁପ୍ତଗୀତା, ଭାବସମୁଦ୍ର, ବଟଅବକାଶ, ଲକ୍ଷ୍ମୀପୁରାଣ, ମୃଗୁଣୀ ସ୍ତୁତି, ବଉଳା ଅଧା, କାନ୍ତକୋଇଲି, କମଳଲୋଚନ ଚଉତିଶା, ଗଣେଶ ବିଭୂତି, ବ୍ରହ୍ମାଣ୍ଡ ଭୂଗୋଳ, ବେଢ଼ା ପରିକ୍ରମା, ଭାଗବତ ଗୀତା, ବିରାଟ ଗୀତା, ନାମରତ୍ନଗୀତା, ଅମରକୋଷ ଗୀତା ପ୍ରଭୃତି ଉଲ୍ଲେଖଯୋଗ୍ୟ ।

ବଳରାମ ଦାସ ଥିଲେ ଜଗନ୍ନାଥ ମହାପ୍ରଭୁଙ୍କର ପରମ ଭକ୍ତ । ଭକ୍ତ ଭାବରେ ଭଗବାନଙ୍କର ଥିଲେ ଅତ୍ୟନ୍ତ ନିକଟବର୍ତ୍ତୀ । ଏତେ ନିକଟତର ହେଲେ ଭକ୍ତ ଭଗବାନଙ୍କର ଅବହେଳା ସହ୍ୟ କରିପାରେ ନାହିଁ । ଗଭୀର ଅଭିମାନରେ ହୃଦୟ ତା'ର ଜର୍ଜରିତ ହୁଏ, ତା'ର ପ୍ରତିଫଳନ ଘଟିଛି ତାଙ୍କର 'ଭାବସମୁଦ୍ର' ପୁସ୍ତକରେ । 'ଭାବସମୁଦ୍ର'ରେ ଭକ୍ତ କବିଙ୍କର ଭାବନାର ସିନ୍ଧୁ ଉଛୁଳି ଉଠିଛି । ରଥଯାତ୍ରାବେଳେ ବଳରାମ ଦାସ ଜଗନ୍ନାଥଙ୍କ ରଥରେ ଚଢୁଥିଲେ । କିନ୍ତୁ ତାଙ୍କ ଦେହରେ ନାରୀ ସହବାସର ଚିହ୍ନ ଦେଖି ପଣ୍ଡାମାନେ ତାଙ୍କୁ ଧକ୍କା ଦେଇ ରଥରୁ ବାହାର କରିଦେଲେ । ସେଥିରେ ଶାରୀରିକ ଆଘାତ ଅପେକ୍ଷା ମାନସିକ ଆଘାତ ହୋଇଥିଲା ଅତ୍ୟନ୍ତ ତୀବ୍ର । ଦୁଃଖ ଜର୍ଜରିତ ଚିତ୍ତରେ ସମୁଦ୍ର କୂଳକୁ ଯାଇ ବଳରାମ ଦାସ ଗୋଟିଏ ବାଲିର ରଥ ତିଆରି କଲେ । ସେଇଠି ଜଗନ୍ନାଥଙ୍କ ପ୍ରତି ତାଙ୍କର ଗଭୀର ଅଭିମାନ ଅନ୍ତର ଭିତରୁ ସହଜ ସରଳ ଗଦ୍ୟମୟ ପଦ୍ୟରେ ଉତ୍ସାରିତ ହୋଇ ଉଠିଥିଲା ।

"ହରି ହୋ ତୋତେ ଆଶ୍ରା କରି କ୍ଷେତ୍ରେ ରହିଲି
ତୋତେ ଆଶ୍ରା କରି ଫଳ ପାଇଲି ।
ହରି ତୁ ବିଶ୍ୱାସ ଘାତକତା କଲୁ
ସେବକଙ୍କ ହାତେ ଏ ଦଣ୍ଡ ଦେଲୁ ।
ହରି ହୋ! ନୃପତି ହାତେ ବନ୍ଧାଇଲୁ ମୋତେ
ବଳିଆ ଦାସ ନ ଯାଇ ପରତେ ।
ହରି ହୋ ତୋତେ ଆଣ୍ଟ କରି ଧରିଣ ଥିଲି
ଏତେ ଦିନେ ଏବେ ଶାସ୍ତି ପାଇଲି ।
ଦୋଷ ମୋ ଥିଲେ ବାରେ ନ ସହିଲୁ ।"

କଥିତ ଅଛି ଯେ ଭକ୍ତର ଏହି ଆବେଗ ଉଚ୍ଛଳ ଆକୃତିରେ ଜଗନ୍ନାଥ ବଡ଼ଦାଣ୍ଡରୁ ରଥ ଛାଡ଼ି ଚାଲିଆସି ବଳରାମଙ୍କ ବାଲି ରଥରେ ବିଜେ କଲେ । ବଳରାମ ଦାସ ଜଗନ୍ନାଥଙ୍କ ଦର୍ଶନରେ ବିହ୍ୱଳ ହୋଇ ସମୁଦ୍ର ବାଲିରେ ଗଡ଼ିବାକୁ ଲାଗିଲେ । ଏଣେ ବଡ଼ଦାଣ୍ଡରେ ରଥ ଅଟକିଗଲା, ରାଜା ସ୍ୱପ୍ନାଦେଶ ପାଇ ସମୁଦ୍ର କୂଳକୁ ଗଲେ ଓ ବଳରାମଙ୍କୁ କ୍ଷମା ମାଗିଲେ ।

ତା'ପରେ ରଥ ଚାଲିଲା । ଏହି କିମ୍ବଦନ୍ତୀ ବ୍ୟତୀତ ତାଙ୍କ ସମ୍ପର୍କରେ ଅନ୍ୟ ଏକ କିମ୍ବଦନ୍ତୀ ଶୁଣାଯାଏ, ଯାହାକି ଅଧିକ ସତ୍ୟ ପ୍ରତୀୟମାନ ହୁଏ । ବଳରାମ ଅସ୍ପୃଶ୍ୟ ଜାତିର ଲୋକଙ୍କୁ ବେଦାନ୍ତ ତତ୍ତ୍ୱ ବୁଝାଉଥିବାରୁ ବ୍ରାହ୍ମଣ, ପଣ୍ଡା ଓ ପଣ୍ଡିତମାନଙ୍କର କ୍ରୋଧର ଶରବ୍ୟ ହୋଇଥିଲେ । ତେଣୁ ସେମାନେ ବଳରାମଙ୍କ ବିରୁଦ୍ଧରେ ନାନା ଅଭିଯୋଗ ଆଣି ତାଙ୍କୁ ରାଜାଙ୍କ ଦ୍ୱାରା କାରାଦଣ୍ଡ ଦେଇଥିଲେ । ସେଥିପାଇଁ ବଳରାମ କାରାଗାରରେ ଥିବାବେଳେ ଜଗନ୍ନାଥଙ୍କ ଉପରେ ଅଭିମାନ କରି 'ଭାବସମୁଦ୍ର' ରଚନା କରିଥିଲେ । ଭକ୍ତ ଭଗବାନଙ୍କ ପ୍ରତି ଅଭିମାନ କରିପାରେ, କିନ୍ତୁ କେବେ ଦୂରେଇଯାଏ ନାହିଁ । ଯେଉଁଠାରେ ପ୍ରେମର ସ୍ୱଚ୍ଛ ଧାରଟିଏ ପ୍ରବାହିତ ହେଉଥାଏ, ତାହା କୌଣସି ପରିସ୍ଥିତିରେ ବି ନିଃଶେଷ ହୁଏ ନାହିଁ । 'ଭାବସମୁଦ୍ର'ର ଗୋଟିଏ ଅଂଶରେ ବଳରାମ ଲେଖିଛନ୍ତି-

"ହରି ହୋ, ରାଜାଙ୍କ ହାତେ ବନ୍ଧାଇଲୁ ମୋତେ
ମୁଁ ତୋତେ ବାନ୍ଧିବି ମୋ ମନ ଗୁପ୍ତେ ।"

ବଳରାମ ଦାସ କେବଳ ଧର୍ମନିଷ୍ଠ ସାଧକ ବା କବି ନ ଥିଲେ, ଥିଲେ ଜଣେ ବୈପ୍ଳବିକ ମାନସିକତା ସମ୍ପନ୍ନ ବ୍ୟକ୍ତି । ୧୬ଶ ଶତାବ୍ଦୀର ସାଂସ୍କୃତିକ ଜଗତରେ ବ୍ରାହ୍ମଣମାନଙ୍କର ଆଧିପତ୍ୟ ଓ ଶୋଷଣ ବିରୁଦ୍ଧରେ ସେ ଦୃଢ଼ ପ୍ରତିବାଦର ସ୍ୱର ଉତ୍ତୋଳନ କରିଥିଲେ । ଏହି ବୈପ୍ଳବିକ କବି-ବ୍ୟକ୍ତିତ୍ୱର ସ୍ୱଷ୍ଟ ପ୍ରତିଫଳନ ଘଟିଛି ତାଙ୍କର ଦୁଇ ତିନୋଟି କ୍ଷୁଦ୍ର ଗ୍ରନ୍ଥରେ । ବେଦାନ୍ତସାର ଗୁପ୍ତଗୀତା, ଭଗବତ୍ ଗୀତା ଓ ଲକ୍ଷ୍ମୀପୁରାଣ ପ୍ରଭୃତି ଏକ ବୈପ୍ଳବିକ ମାନସିକତା ଭିତରୁ ସୃଷ୍ଟି ଲାଭ କରିଛି ।

ସାରଳା ଦାସ ତତ୍ତ୍ୱଦର୍ଶୀ ବ୍ରାହ୍ମଣମାନଙ୍କ ସହ ସ୍ପର୍ଦ୍ଧା ପୋଷଣ କରିବାକୁ ଯାଇ ନିଜକୁ ଶୁଦ୍ରମୁନି ଭାବେ ପରିଚିତ କରାଇଥିଲେ । ମହାଭାରତରେ ଶୁଦ୍ରମୁନି ଶବ୍ଦଟିକୁ ସାରଳା ଦାସ ନିଜର ନାମ ପୂର୍ବରୁ ଏତେ ବ୍ୟାପକ ଭାବେ ବ୍ୟବହାର କରିଥିଲେ ଯେ ତାହା ପରବର୍ତ୍ତୀ ସମୟରେ ଅବ୍ରାହ୍ମଣ ତତ୍ତ୍ୱଜ୍ଞ, କବି ବଳରାମ ଦାସଙ୍କ କ୍ଷେତ୍ରରେ ମଧ୍ୟ ପ୍ରଯୁକ୍ତ ହୋଇଗଲା । ବ୍ରାହ୍ମଣ ପଣ୍ଡିତମାନେ ତାଙ୍କର ପ୍ରତିଭା ଓ ଶାସ୍ତ୍ରଦର୍ଶିତାକୁ ସ୍ୱୀକାର କରି ତାଙ୍କୁ ଶୁଦ୍ରମୁନି ରୂପେ ଆଖ୍ୟାୟିତ କରିବାକୁ ବାଧ୍ୟ ହୋଇଥିଲେ । ଯେଉଁ ବେଦାନ୍ତ କେବଳ ବ୍ରାହ୍ମଣ ପଣ୍ଡିମାନଙ୍କ କୋଠ ସମ୍ପତ୍ତି ହୋଇ ରହିଆସିଥିଲା, ତାହାକୁ ଜାତି ଧର୍ମ ନିର୍ବିଶେଷରେ ଅପାମର ଜନତାର ସହଜ ଅବବୋଧ ଲାଗି ସରଳ ଓଡ଼ିଆ ଭାଷାରେ ଲେଖିଲେ ବଳରାମ ଦାସ । ଏଥିପାଇଁ ବ୍ରାହ୍ମଣମାନଙ୍କର ଉନ୍ନାସିକତା ଓ ଅପମାନ ତାଙ୍କୁ ସହ୍ୟ କରିବାକୁ ହୋଇଥିଲା ।

"ତୁ ସେମାନାଥ ଶୁଦ୍ର ସୁତ
ତୁ କହୁ ବେଦାନ୍ତ ଚରିତ ।"

ଅସ୍ପୃଶ୍ୟ ଜାତିଠାରୁ ଆରମ୍ଭ କରି ପ୍ରତ୍ୟେକ ଜାତିର ଲୋକମାନଙ୍କୁ ବେଦାନ୍ତ ତତ୍ତ୍ୱ ବ୍ୟାଖ୍ୟା କରି ଶୁଣାଇବାରେ ତାଙ୍କର ଯେଉଁ ଉଦ୍ଦେଶ୍ୟ ରହିଥିଲା, ତାହା ପୁଣି ପ୍ରତିଫଳିତ ହେଲା ଶ୍ରୀମଦ୍ ଭଗବତ୍ ଗୀତାର ଓଡ଼ିଆ ଅନୁବାଦରେ । ଏହି ପୁସ୍ତକର ଅନୁବାଦ କରି ତାଙ୍କୁ ଅବଶ୍ୟ ବହୁ ନିର୍ଯ୍ୟାତନାର ସମ୍ମୁଖୀନ ହେବାକୁ ପଡ଼ିଛି । ଏପରିକି ବ୍ରାହ୍ମଣମାନଙ୍କ ପ୍ରରୋଚନାରେ ଏହି ବିରାଟ ପ୍ରତିଭାବାନ ବ୍ୟକ୍ତିଙ୍କୁ ରାଜରୋଷର ସମ୍ମୁଖୀନ ହୋଇ କାରାଦଣ୍ଡ ଭୋଗ କରିବାକୁ ପଡ଼ିଛି ।

ମୁକ୍ତି ମଣ୍ଡପରେ ବ୍ରାହ୍ମଣ ପଣ୍ଡିତମାନେ ଯେତେବେଳେ ଭଗବତ ଗୀତାର ବ୍ୟାଖ୍ୟା କରୁଛନ୍ତି, ସେତିକିବେଳେ ସେଠାରେ ବଳରାମ ଦାସ ଉପସ୍ଥିତ ଥିଲେ । ଏହା ଦେଖି ବ୍ରାହ୍ମଣମାନେ କ୍ରୋଧାନ୍ୱିତ ହୋଇ ତାଙ୍କୁ ଭର୍ତ୍ସନା କରିବାକୁ ଲାଗିଲେ ଅତ୍ୟନ୍ତ କଟୁ ଓ ଅସମ୍ମାନଜନକ ଭାଷାରେ –

"ଭଗବାନ ଯାହା ପୂର୍ବେ ଆଦିତ୍ୟଙ୍କୁ କହି
ସେ ଗୀତା ଶୁଣିଲୁ ତୁ ଶୁଦ୍ରମୁନି ହୋଇ ।
ଶ୍ୱାନ ହୋଇ ଡରୁ ଅନ୍ନ ଭୁଞ୍ଜିଲୁ ପାମର
ଠାକୁରଙ୍କୁ ଜଣାଇବା ବେଗେ ୟାକୁ ଧର ।
ଶୁଦ୍ର ହୋଇ ଯେବେ କରେ ବ୍ରହ୍ମକର୍ମ ସଂଜ୍ଞା
ତାହାକୁ ଉଚିତ ଦଣ୍ଡ ହୁଅଇ ଯେ ଆଜ୍ଞା ।

ଯେଉଁ ବଳରାମ ଦାସ ତାଙ୍କର କର୍ମଦ୍ୱାରା ସାଧାରଣ ମଣିଷର ଚିତ୍ତ ଜୟ କରିପାରିଥିଲେ, ସେ ବ୍ରାହ୍ମଣମାନଙ୍କର ରକ୍ତଚକ୍ଷୁକୁ ଭ୍ରୂକ୍ଷେପ କରିବେ କାହିଁକି? ସର୍ଦ୍ଧାର ସହ ରାଜାଙ୍କ ଆଗରେ ଉତ୍ତର ଦେଲେ-

"ଏ ଯେବେ ବ୍ରହ୍ମ ବିଦ୍ୟାକୁ ଛନ୍ତି ଗୋପ୍ୟ କରି
କାଲି ଦେବାର୍ଚ୍ଚନା ବେଳେ କହିବ ବାଉରୀ ।"

ତା' ପରିଦିନ ବାଉରୀ ମୁହଁରୁ ବେଦାନ୍ତ ତତ୍ତ୍ୱ ଶୁଣି ସମସ୍ତେ ବିସ୍ମିତ ହୋଇ ଯାଇଥିଲେ । ତା' ପରେ ବଳରାମ ଦାସ ଭଗବତ୍ ଗୀତାର ଯେଉଁ ବ୍ୟାଖ୍ୟା କଲେ ତାହା ଶୁଣି ବ୍ରାହ୍ମଣମାନେ ଅଭିଭୂତ ହୋଇପଡ଼ିଲେ । ସେମାନଙ୍କର କୌଣସି ବାକ୍ସ୍ଫୂର୍ତ୍ତି ଘଟିଲା ନାହିଁ । ବଳରାମଙ୍କ ଅସାଧାରଣ ପାଣ୍ଡିତ୍ୟ ଗଜପତିଙ୍କୁ ସେଦିନ ଗଭୀର ଭାବେ ଆଲୋଡ଼ିତ କରିଥିଲା ।

ବଳରାମ 'ବେଦାନ୍ତସାର ଗୁପ୍ତଗୀତା' ଓ 'ଭଗବତ୍ ଗୀତା' ରଚନା ଦ୍ୱାରା ସାଧାରଣ ଲୋକଙ୍କୁ କେବଳ ତତ୍ତ୍ୱଜ୍ଞାନର ଅଧିକାରୀ କରାଇନଥିଲେ, ସେମାନଙ୍କୁ ସମାଜରେ ବ୍ରାହ୍ମଣମାନଙ୍କର ସମକକ୍ଷ ଉଚ୍ଚ ମର୍ଯ୍ୟାଦା ଦେବାଲାଗି ମଧ୍ୟ ପ୍ରୟାସୀ ହୋଇଥିଲେ । ତାଙ୍କର 'ଲକ୍ଷ୍ମୀପୁରାଣ' ଏହି ପ୍ରୟାସର ଏକ ଦୃଷ୍ଟାନ୍ତ ।

'ଲକ୍ଷ୍ମୀପୁରାଣ'ରେ ବଳରାମ ପ୍ରମାଣ କରି ଦେଇଛନ୍ତି – ଭଗବାନ ସ୍ପୃଶ୍ୟ - ଅସ୍ପୃଶ୍ୟ ବିଚାରର ବହୁ ଊର୍ଦ୍ଧ୍ୱରେ । ଭକ୍ତିର ନିବିଡ଼ତା ଯୋଗୁଁ ହିଁ ସେ ହୁଅନ୍ତି ଭକ୍ତର ନିକଟବର୍ତ୍ତୀ । ନିର୍ମଳ ଶୁଦ୍ଧପୂତ ମାନସିକତା, ଅନାବିଳ ଭକ୍ତି ଶ୍ରୀୟା ଚଣ୍ଡାଳୁଣୀକୁ ସମାଜର ସର୍ବୋଚ୍ଚ ସ୍ଥାନରେ ଅଧିଷ୍ଠିତ କରାଇଛି । ଲକ୍ଷ୍ମୀପୁରାଣ ସମଗ୍ର ଓଡ଼ିଶାରେ ଏପରି ବ୍ୟାପକ ଭାବେ ପ୍ରଚାରିତ ଯେ ପ୍ରତ୍ୟେକ ଲୋକ ଏହାର ମହତ୍ ଭାବନା ଦ୍ୱାରା ପ୍ରଭାବିତ । ଷୋଡ଼ଶ ଶତାବ୍ଦୀର ଜଣେ ସନ୍ଥକବି ସ୍ପୃଶ୍ୟ-ଅସ୍ପୃଶ୍ୟ ଭେଦଭାବର ନିରାକରଣ ଲାଗି ଯେଉଁ ପ୍ରୟାସ କରିଛନ୍ତି, ତାହା ଭାରତୀୟ ସାହିତ୍ୟ କ୍ଷେତ୍ରରେ ଅନନ୍ୟତାର ଦାବି ରଖେ ।

ଧର୍ମୀୟ କ୍ଷେତ୍ରରେ ବ୍ରାହ୍ମଣମାନଙ୍କର ପ୍ରାଧାନ୍ୟ, ସାମାଜିକ ଅବିଚାର, ଜାତିଗତ ବିଭେଦ ଏବଂ ଅସ୍ପୃଶ୍ୟମାନଙ୍କର ଦୁର୍ଭୋଗ ଓ ଅବମାନନା ବଳରାମଙ୍କ ହୃଦୟକୁ ଗଭୀରଭାବେ ଆଲୋଡ଼ିତ କରିଥିଲା । ତେଣୁ ସେ ଉଚ୍ଚାଙ୍ଗ ସାହିତ୍ୟ ରଚନା କରିବା ସଂଗେ ସଂଗେ ସାମାଜିକ ଅଭ୍ୟୁତ୍ଥାନ ଲାଗି ଏହିପରି କ୍ଷୁଦ୍ର ପ୍ରଚେଷ୍ଟାମାନ ମଧ୍ୟ କରିଯାଇଛନ୍ତି । ଷୋଡ଼ଶ ଶତାବ୍ଦୀର ଜଣେ କବିଙ୍କର ଏହି ବୈପ୍ଳବିକ ମନୋଭାବ ପ୍ରକୃତପକ୍ଷେ ଅଭୂତପୂର୍ବ ତଥା ଅନୁକରଣୀୟ । ଶେଷରେ ଗୋଟିଏ ବାକ୍ୟରେ କୁହାଯାଇପାରେ, ବଳରାମ ଦାସ ଏକାଧାରରେ ମହାନ୍ କାବ୍ୟକାର ଓ ସମାଜବିପ୍ଳବୀ ।